ଶ୍ରୀମତୀ ଅନ୍ନପୂର୍ଣ୍ଣା ଶ୍ରୀ ସତ୍ୟବାଣୀ ଜ୍ୟେଷ୍ଠା ଓ
ଶ୍ରୀ ଲୁବଣ୍ଧବତୀ କନିଷ୍ଠା । ଡା । ବଲରାମପୁର
ସଜ୍ଜନମାନଙ୍କ ସାହାଯ୍ୟ ଦ୍ୱାରା
ପ୍ରଥମବାର ମୁଦ୍ରିତ ।

# ଘରଣି ମାଳା ।

---



ଶ୍ରୀ ଚିନ୍ତାମଣି ପଟ୍ଟନାୟକଙ୍କ ଦ୍ୱାରା
ପ୍ରକାଶିତ ।

ସନ ୧୩୩୬ ସାଲ ।

# ସୂଚୀ ।







# ନିବେଦନ ।



ଏହି ଅଧୀନ ନିବେଦକ ଶ୍ରୀ ଚିନ୍ତାମଣି ପଟ୍ଟନାୟକ କଟକ, ଜିଲ୍ଲା ଯାଜପୁର ସ: ଡି: ଅନ୍ତର୍ଗତ ଧର୍ମଶାଳା ଥାନାରେ ପ୍ର । ଓଲାସ । ସା । ନରସିଂହପୁର ନିବାସୀ ଓ ସାବିକ ଓଲାସ ଜମିଦାର କାନଗୋଇ ବଂଶଜ ଅଟେ । ଏ ଅଧୀନର ପୂର୍ବପୁରୁଷ ପ୍ରଧାନ ଜମିଦାରଙ୍କ ଅପାର-ଗତାରୁ ଉକ୍ତ ବୃହତ୍ ଜମିଦାରି ଓଲାସ ମାହାଲ ହସ୍ତାନ୍ତର ହୋଇଯିବା ହେତୁ ସେହି ବଂଶଜ ସମସ୍ତେ ନାନା ଉପାୟକୁ ଅବଲମ୍ବନ କରି ଚଳୁ-ଅଛନ୍ତି, ଯାହାଙ୍କ ବର୍ଣ୍ଣନା ବାହୁଲ୍ୟ ଅଟେ । ଯଦ୍ୟପି କରଣ ଜାତି ପଦ କାଶ୍ୟପଗୋତ୍ର ଓ ଗୃହଉଚ୍ଚାରଣ ଅସ୍ମମାନଙ୍କର ମର୍ଯ୍ୟାଦା ପ୍ରସିଦ୍ଧ । ଅଧୀନ ୧ମରେ ବ ୧୯ ବର୍ଷ ବୟଃକ୍ରମରେ । ଢ । ବଲରାମପୁର ସ୍ୱର୍ଗୀୟ ନରପତି ବ୍ରଜବିହାରୀ ଧୀର ବୀରବର ହରିଚନ୍ଦନଙ୍କ ରାଜତ୍ୱ ସମୟରେ ତାଙ୍କ ଅଧୀନସ୍ଥ ଅତ୍ର ବଲରାମପୁର ଷ୍ଟେଟରେ ଚାକିରି କରି ଅବଧି ବା ୬୧ ବର୍ଷ ବୟଃକ୍ରମ ଭୋଗ ପର୍ଯ୍ୟନ୍ତ ନିଯୁକ୍ତଅଛି । ଏ ରାଜବଂଶ ପ୍ରଥମ ପଶ୍ଚିମ ଜୟପୁର ରାଜବଂଶୀୟ ସୂର୍ଯ୍ୟବଂଶୀୟ ଅଟନ୍ତି । ଉପରୋକ୍ତ ବ୍ରଜ-ବିହାରୀ ରାଜାଙ୍କ ବିୟୋଗ ପରେ ତାଙ୍କର କନିଷ୍ଠଭ୍ରାତା ସ୍ୱର୍ଗୀୟ ରାଜା ଦାଶରଥି ଧୀର ବୀରବର ହରିଚନ୍ଦନ ମହାପାତ୍ର ସନ ୧୩୩୨ ସାଲ କାର୍ତ୍ତିକ ମାସରେ ପରଲୋକ ପ୍ରାପ୍ତ ହେବାରୁ ତାଙ୍କର ଜନ୍ମିତପୁତ୍ର ଶ୍ରୀଲକ୍ଷ୍ମୀ ନାରାୟଣ ପୂର୍ଣ୍ଣଚନ୍ଦ୍ର ଧୀର ବୀରବର ହରିଚନ୍ଦନ ରାଜଶ୍ରୀ ପ୍ରାପ୍ତ ହୋଇ ଉତ୍ତରାଧିକାରୀ ସୂତ୍ରେ ସମ୍ପୂର୍ଣ୍ଣ ସତ୍ତ୍ୱବାନ ହୋଇ ଗାଦିରେ ବିଜେ କରିଅଛନ୍ତି । ଏ ରାଜବଂଶ ପ୍ରସିଦ୍ଧ ଯଦିଓ ଥିବା ସ୍ଥଳେ, ପୂର୍ବ ରାଜା-ମାନଙ୍କ ଦୂରଦର୍ଶୀପଣ ଦେଖି ଓ ନିଜ ଦୁର୍ଗର ବିପଦସଙ୍କୁଳ ସ୍ଥାନ

ପର୍ବତ ଉପରେ ଥିବାରୁ, ମହାମାନ୍ୟବର ଦୟାମୟ ଭାରତେଶ୍ୱର ଶ୍ରୀ ଶ୍ରୀ ଇଂରାଜ ଗଭର୍ଣ୍ଣମେଣ୍ଟଙ୍କଠାରୁ କୃପାବଶତଃ ଖଡ୍ଗ ଅସ୍ତ୍ର ଶସ୍ତ୍ର ବ୍ୟବହାର କରିବାକୁ ପୂର୍ବରୁ ଛଡ଼ ପାଇଥିବାର ସନନ୍ଦ ହାସଲ କରାଯାଇ ଅଛି ଅର୍ଥାତ୍ ବିନା ଲାଇସେନ୍ସରେ ଉକ୍ତ ଅସ୍ତ୍ର ଶସ୍ତ୍ର ବ୍ୟବହାର କରି ପାରିବେ । ଏ ରାଜବଂଶରେ ପୂର୍ବରୁ ଗଡ଼ଜାତ ରାଜାମାନଙ୍କ ସହିତ ଓ ଦକ୍ଷିଣ ଗଞ୍ଜାମ ଜିଲ୍ଲାର ପ୍ରଧାନ ପ୍ରଧାନ ରାଜାମାନଙ୍କ ସହିତ ବନ୍ଧୁତା ସମ୍ପର୍କ ଚଳିଥିଲା ବର୍ତ୍ତମାନ ମଧ୍ୟ ଚଳୁଅଛି । ଏ ପର୍ଯ୍ୟନ୍ତ ଏହି ବଲରାମପୁର ରାଜବଂଶରେ ଯେ କ ରାଜା ତାର ବଡ଼ପୁତ୍ର ରାଜା ହେବ, ଅପର ପୁତ୍ରମାନେ କିମ୍ବା ଅପର ଭାଇମାନେ ଖୋରାକ ପୋଷାକ ପାଇବା ପଦ୍ଧାରଥିବା ପ୍ରକାଶ୍ୟରୂପେ ଚଳୁଅଛି । କୌଣସି ଖୋରାକ ପୋଷକା ଭୋଗୀ ନିରଂଶ ହେଲେ ତାହାର ଭୋଗକୃତ ଭୂସମ୍ପତ୍ତି ରାଜାଙ୍କ ହସ୍ତଗତ ଥାଏ, ପୁଣି କେହି ଖୋଃ ପୋଃ ହାର ଖଞ୍ଜାପାଇବା ପ୍ରୟୋଜନ ହେଲେ ସେହି ନିରଂଶ ବା ପଳାତ୍ମକ ଭୂମିକୁ ନୂତନ ବ୍ୟକ୍ତିଙ୍କ ଖୋଃ ପୋଃ ସୂତ୍ରେ ତାଙ୍କୁ ଦିଆଯାଏ । ରାଜାଙ୍କର ଯେତେ ରାଣୀଥିବେ ତନ୍ମଧ୍ୟରେ ୧ମ ରାଣୀ ପାଟରାଣୀ ବା ପଟ୍ଟମହିଷୀ ପଦବାଚ୍ୟ ଓ ଅପର ରାଣୀମାନେ ମହାଦେଇ ପଦେ ପ୍ରଚଳିତ ହୁଅନ୍ତି । ବଡ ପୁଅ ରଜା, ସାନ ପୁତ୍ର ପଟ୍ଟାଏତ ବୋଲି ପ୍ରତିଷ୍ଠିତ ହୁଅନ୍ତି । ଏ ରାଜବଂଶରେ ପୁଷ୍ୟାଭିଷେକ ଅର୍ଥାତ୍ ରାଜା ଓ ଜ୍ୟେଷ୍ଠା ପଟ୍ଟମହିଷୀ ଏକତ୍ରେ ପ୍ରତିବର୍ଷ ମୂର୍ଦ୍ଧାଭିଷେକ ହୁଅନ୍ତି । ଶ୍ରୀ ଦୁର୍ଗାପୂଜା ପ୍ରଧାନ ଇଷ୍ଟ ଧର୍ମରେ ଶାରଦୀୟ ପର୍ବପୂଜା ଜାଗ ବିଧିମତେ ନିର୍ବାହ କରନ୍ତି, ମହାପଣ୍ଡ ଓ ପଣ୍ଡ ବଳିଦାନାଦି ଶାସ୍ତ୍ର ବିଧିମତେ କରନ୍ତି । ଏ ରାଜବଂଶର କୌଷିକଗୋତ୍ର ବିଶ୍ୱାମିତ୍ର ଅଘମର୍ଷଣ ପ୍ରବର ଅଟେ । ଏ ରାଜବଂଶ ପ୍ରଥମେ ଜୟପୁର ରାଜଗଡ ଷତ୍ରିୟ ଅଟନ୍ତି ଏହାଙ୍କର ସିଂହସଙ୍ଗ୍ଜ୍ଞା ଥିଲା । ପ୍ରାଚୀନକାଳରେ ତୀର୍ଥାଟନରେ ଆସିବା ଉପଲକ୍ଷେ ପ୍ରବଳପ୍ରତାପ ଓଡ଼ିଶା ରାଜା କେଶରୀ ବଂଶୀୟ ଯଜାତିକେଶୀ

ସ୍ୱାଙ୍କ ସଙ୍ଗେ ସାକ୍ଷାତ୍ କରି କ୍ଷତ୍ରିୟ ବିଦ୍ୟା ଦେଖାଇ ଓଡ଼ିଶା ରାଜାଙ୍କଠାରୁ ଧୀର ସଙ୍ଗୀଓ ବଳରାମପୁର ରାଜ୍ୟଲାଭ କରି ଏହି କକ୍ଷାରେ ଅଧିପତି ହୋଇଥିଲେ । ଏହାଙ୍କର ବିସ୍ତାରିତ ବିବରଣ ଓ ମାନ ମର୍ଯ୍ୟାଦା ଗଡ଼-ଜାତୀୟ ରାଜାମାନଙ୍କ ସହିତ ସମାନ ଅଟେ । ରାଜାମାନଙ୍କର କ୍ରମିକନାମ ପୃଥକରେ ଲିଖିତ ହୋଇଅଛି । ଅଧୀନ ଏହି ବଳରାମପୁରରେ ଅବସ୍ଥିତ ଷ୍ଟେଟ ସିଳସ୍ତାଦାର କାର୍ଯ୍ୟରେ ଅଛି ଏକାଦିକ୍ରମେ ପ୍ରାୟ ୪୦ । ୪୧ ବର୍ଷନିଯୁକ୍ତ ଅଛି । ଏତେ ବର୍ଷ ମଧ୍ୟରେ ଷ୍ଟେଟରେ ଯେତେକାର୍ଯ୍ୟ କରିଅଛି ତହିଁ ମଧ୍ୟରେ ପର୍ବତ ଉପରକୁ ସଡ଼କ ରାସ୍ତା ଏବଂ ବଳରାମପୁର ରାଜକନ୍ୟା ଯେ କି ଆଠଗଡ଼ ରାଜା ବାହାଦୁର ସ୍ୱର୍ଗୀୟ ବିଶ୍ୱନାଥ ରାଜାସାହେବଙ୍କ ଶ୍ରୀମତୀ ରାଧାପ୍ରିୟା ପଟ୍ଟମହିଷୀ ବର୍ତ୍ତ-ମାନ ଜ୍ୟେଷ୍ଠା ରାଜମାତା । କି । ଆଠଗଡ଼ ଅଟନ୍ତି ତାଙ୍କ ପ୍ରଦତ୍ତ ବହୁଅର୍ଥ ଦ୍ୱାରା ବଳରାମପୁର ନିଜଗଡ଼ସ୍ଥ ପର୍ବତଉପରେ ଶ୍ରୀ ଜଗନ୍ନାଥଙ୍କ ବଡ଼ରେଖା ଦେଉଳ ଓ ଚତୁଃପାର୍ଶ୍ୱ ବେଢ଼ାକୁ ଶ୍ରୀ ଜଗନ୍ନାଥଙ୍କ କୃପାବଳସଂଯୋଗେ କରାଇଥିବା ଏବଂ ସ୍ୱର୍ଗୀୟ ରାଜା ଦାସରଥି ଧୀର ବୀରବର ହରିଚନ୍ଦନଙ୍କ ନିର୍ଦ୍ଦେଶ ଓ ଅର୍ଥଦ୍ୱାରା ପୂର୍ବେ ଏକମୂର୍ତ୍ତି ଜଗ-ନ୍ନାଥ ଥିଲେ ଗତ ନବକଳେବରବର୍ଷରେ ତିନମୂର୍ତ୍ତି ଶ୍ରୀ ଦାରୁବ୍ରହ୍ମ ନିର୍ମାଣ କରାଇବା ପ୍ରଧାନକାର୍ଯ୍ୟ ଅଟେ। ଏହି ତିନିମୂର୍ତ୍ତିର ନୂତନ ନିର୍ମାଣ ବିଷୟ ଆଗେ ଦାଶରଥିଙ୍କୁ ସ୍ୱପ୍ନାଦେଶ ହେଲାପରେ, ଯଥାବିଧିରେ କବାଟବନ୍ଧ ଗ୍ରାମସ୍ଥ ଜେନିମା ନାମକ ଏକ ସ୍ତ୍ରୀଲୋକ ବାଡ଼ିରେ ଅତି ପ୍ରାଚୀନକାଳରୁ ଥିବା ନିମ୍ବବୃକ୍ଷ ଛେଦନ-ପୂଜାବେଳେ, ବହୁଦର୍ଶକ ରାଜାଙ୍କ ସମ୍ମୁଖରେ, ଉକ୍ତ ବୃକ୍ଷର କାଣ୍ଡଦେଶରୁ ଏକ କୃଷ୍ଣବର୍ଣ୍ଣ ଧାମଣସର୍ପ ଅତି ଚମତ୍କାର ଭାବେ ବାହାରିବାରୁ ସେହି ଅଂଶରେ ଶ୍ରୀ ବଳଦେବମୂର୍ତ୍ତି ହୋଇ ଅଛନ୍ତି । ଉପରଭାଗ ଶ୍ରୀ ଜଗନ୍ନାଥ ଶ୍ରୀ ସୁଭଦ୍ରା ହୋଇଅଛନ୍ତି । ସେହି ବୃକ୍ଷର ଶେଷଅଂଶରେ ପତିତପାବନ ମୂର୍ତ୍ତି ପ୍ରସ୍ତୁତ ହୋଇଥିଲା । ସନ ୧୩୩୦ ସାଲ ଦେଉଳ ପ୍ରତିଷ୍ଠାସହିତ ପ୍ରତିଷ୍ଠିତ କରାଯାଇଥିବା ଶ୍ରୀ ପତିତ-

ପାବନ ମୂର୍ତ୍ତି ଦେଉଳ ଅଟେ ବିରାଜମାନଥିବା ପ୍ରସିଦ୍ଧ ଅଟେ ।
ଉପରୋକ୍ତ ରାଜା ଦାଶରଥି ଏ ରାଜବଂଶର ପୁ ୪୩ ରୁଷ ରାଜଗୀ ଦ୧୭
ଭୋଗ ଓ ରାଜତ୍ୱକଲେ । ସନ ୧୩୩୨ କାର୍ତ୍ତିକ ଦ ୭ ନ ବୁଧବାର
ନବମୀ କାଲବେଲେ ବାତରୋଗରେ ସ୍ୱର୍ଗାରୋହଣହେଲେ । ପ୍ରାଣ-
ଯିବାର କିଛିସମୟ ପୂର୍ବରୁ ସମସ୍ତଙ୍କୁ ଡ଼କାଇ ପାଖେ ବସାଇ ଅନ୍ତିମ
ସମସ୍ତଙ୍କଠାରୁ ବିଦାୟହେଲେ, ଯୁବରାଜ ସମସ୍ତଙ୍କୁ ଲାଗିଲ ବୋଲି କହି
ଦାନପୁଣ୍ୟ କରି ଶ୍ରୀ ଗୁରୁଦେବଙ୍କ ଆଗେ ଦୃଢ଼ରୂପେ ପଦ୍ମାସନରେ
ପୂର୍ବମୁଖୀହୋଇ ବସି ପ୍ରାଣ ହରାଇଲେ । ତାଙ୍କର ଶ୍ରୀ ଯୁବରାଜ
ନାବାଳକ ରାଜଗାଦି ପ୍ରାପ୍ତହେଲେ ଶ୍ରୀମତୀ ଜ୍ୟେଷ୍ଠା ରାଜମାତା ଶ୍ରୀମତୀ
ସତ୍ୟବତୀ ପାଟ ଶିରୋପା ରାଜଶାଢ଼ି ପ୍ରଦାନକଲେ । ସେହି ନିୟମରେ
ରାଜଗାଦି ରକ୍ଷିତ ହୋଇଅଛି । ନାବାଳକ ରାଜା ଦୀର୍ଘାୟୁହେବେ ସେଥି
ପାଇଁ ସମସ୍ତ ପାଠକବର୍ଗଙ୍କୁ ପ୍ରାର୍ଥନାକରି ଉଲ୍ଲେଖକରିଅଛି । ଯେଉଁ
ଦାଶରଥି ରାଜା ପୁରାତନ ଏବଂ ହିନ୍ଦୁଧର୍ମପରାୟଣ, ତାଙ୍କୁ ଅନ୍ନଦାତା
ପିତାପ୍ରମାଣେ ଜ୍ଞାନକରି ଓ ପ୍ରଭୁବତ୍ସଳତାରେ ଅନୁପ୍ରାଣିତ ହୋଇ
ତାଙ୍କର ଜୀବନୀକୁ ପଦ୍ୟାକାରେ ରଚନାକରି, ପ୍ରକାଶହେବା ନିମନ୍ତେ
ମଧୁପୁର ରାଜା ଓ ଶ୍ରୀମତୀ ପଟ୍ଟମହିଷୀ । କ । ମଧୁପୁର ଏବଂ ବଲରାମପୁର
ଶ୍ରୀମତୀ ରାଜମାତା ଦ୍ୱୟ ଅଷ୍ଟଦୁର୍ଗର ଶ୍ରୀମତୀ ଶ୍ରୀ ଜ୍ୟେଷ୍ଠା ରାଜମାତାଙ୍କ
ଶ୍ରୀହସ୍ତେ ଓ ଶ୍ରୀ ମ୍ୟାନେଜର ଦାମୋଦର ବାବୁଙ୍କ ହସ୍ତେ ଅର୍ପଣକଲି ।
ସାଦରେ ଗ୍ରହଣକରି ପ୍ରାର୍ଥନା ପୂର୍ଣ୍ଣକଲେ ଏବଂ ପାଠକବର୍ଗ ଦୋଷସମୂ
ପୂର୍ବଙ୍କ କଷ୍ଟ ସ୍ୱୀକାରକରି ପାଠକଲେ ଶ୍ରମଫଳଜ୍ଞାନକରିବି ।

ଧର୍ମ ପିତା ଶ୍ରୀ ଜଗନ୍ନାଥ ଏବଂ ମାତା ଶ୍ରୀ ସରସ୍ୱତୀଙ୍କ ପାଦପଦ୍ମେ ଏ
କ୍ଷୁଦ୍ର ପୁସ୍ତକଖଣ୍ଡି ଭକ୍ତିଭାବେ ପୁଷ୍ପାଞ୍ଜଳି ଭୁଲି ଅର୍ପଣକରି ବର୍ତ୍ତମାନ
ଈଶ୍ୱରଙ୍କୁ ଜଣାଉଅଛି ଯେ ତାଙ୍କ କୃପାବଶତଃ ମାନ୍ୟବର ଶ୍ରୀଲ୍ ଶ୍ରୀଯୁକ୍ତ
ବୀରବର ଶ୍ରୀମାନ୍ ଶ୍ରୀ ଶ୍ରୀ ରାଜା ନାରାୟଣଚନ୍ଦ୍ର ଧୀର ନରେନ୍ଦ୍ର । କା ।
ମଧୁପୁରଙ୍କ ଦୟା ଓ ଶ୍ରଦ୍ଧାଦ୍ୱାରା ବଲରାମପୁର ଷ୍ଟେଟ ଓ ନାବାଳକ

( ।/ )

ମାନ୍ୟବର ଶ୍ରୀଯୁକ୍ତ ଶ୍ରୀ ଶ୍ରୀ ରାଜା ଶ୍ରୀ ଲକ୍ଷ୍ମୀନାରାୟଣ ପୂର୍ଣ୍ଣଚନ୍ଦ୍ର ଧୀର ଖୀଟିବର ହରଚନ୍ଦନଙ୍କ ସର୍ବମଙ୍ଗଳ ଶାସନରେ ଯେଉଁ ପର ଜସ୍ପୃଂକା ଉତ୍କୀର୍ଯ୍ୟମାନ ହେଉଅଛି ଓ ସେହିପରି ଚିରଦିନ ହେଉଥାଉ । ଇତି ।

( ନ )

ଶ୍ରୀ ଚନ୍ଦ୍ରମଣି ପଟ୍ଟନାୟକ

ହିରସ୍ତାଦାର । କ୍ୟା । ବଳରାମପୁର

ଷ୍ଟେଟ ।







## ଶ୍ରୀ ସରସ୍ୱତୀଙ୍କ ଜଣାଣ ।

କର୍ଣ୍ଣାଟ ରାଗ ତାଳ ଝଓ୍ୱାଲ ।

ମାତ ଭଗବତୀ ସରସ୍ୱତୀ ବିନୟ ଦେନ ।
ଅବନୀ ଧାମ ଦୁର୍ଗନ୍ଧ କର ଖଣ୍ଡନ । ଘୋଷା ।

ବୀଣା ପୁସ୍ତକକୁ ଧର ! କରୁଣାପଦ ବିତର । ବସନ୍ତ ଶିରୀ ପ୍ରସାର ନିଜ ବିମଳଣ । ୧ । ପବନ ବାହନୀ ପୁଣି । ପଞ୍ଚତନ୍ତ୍ର ଧାରଣୀ । ଅଦସ୍ମୁ ସିଦ୍ଧି ଦାୟିନୀ, ଅସ ବନ୍ଦନ । ୨ । ତ୍ରିତାପକୁ ନିବାରଣ । କର ଦେବୀ ଅକଥନ । ସଭାରେ ସାରେ ସ୍ୱସ୍ୱରେ ଗାଇବି ଗୁଣ । ୩ । ପଦଧୂଳି ହୃଦେ ଥାଇ । ଦଥ ଶୀଘ୍ରେ ସଦାଭାଳି । ବସନ୍ତ ପଞ୍ଚମୀ ଦିନେ ଦିଅ ଦର୍ଶନ । ୪ । ଶୁକ୍ଳବର୍ଣ୍ଣା ସୁଶୋଭନା । ସପ୍ତସ୍ୱରାଦ ସାଧନା । ଅନନ୍ତ-ଶାସ୍ତ୍ରେ ବୀଣା କଲ ବାଦନ । ୫ । ତାପତ୍ରୟ ବିନାଶିନୀ । ଅଭୟ ପଦ ଦାୟିନୀ । ସପ୍ତସ୍ୱର ପୂର୍ଣ୍ଣାଧ୍ୱନୀ ଶ୍ରୁତୀସ୍ତରେଣ । ୬ । ସାହଗମ ପଦେ ଭୋଳ । ବୀଣାବାଦ୍ୟରେ କୁଶଳ । ସାଗରଙ୍କୋ । ଛ ତରଙ୍ଗେ ବର୍ଣ୍ଣ-ପ୍ରମାଣ । ୭ । ଶ୍ରୀ ବୃନ୍ଦାବନ ଚନ୍ଦ୍ରେଣ । ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶାଣ । କଲେ

ଶ୍ରୀନନ୍ଦାତ୍ମଜପୂର୍ଣ୍ଣ ଚରିତଗଣ । ୮ । ଚିନ୍ତାମଣି ହୃଦଖେଦ । ହର ଭକ୍ତି ପଦ୍ମ ପାଦ । ପଦକମଳ ଧ୍ୟାନେ କାଲ ହରନ । ୯ ।

———:✽:———

ରାଗ କାମୋଦୀ ଏକତାଳୀ ।

କିଶୋର ଚନ୍ଦ୍ର ଘ—ଦେଶୀୟ ଗୀତ ରାଗ ।

ଜୟ ମା ଭଗବତୀ ଜନନୀ ଗୋ । ବଜାଇ ବୀଣା ହଂସଚନ୍ଦ୍ରମା ଗୋ । ତବ କଞ୍ଜଚରଣ ପାବନ ରେଣୁ କଣ ସ୍ପରଶନେ ବିଜ୍ଞତ୍ୱ ଅଜ୍ଞନା ଗୋ । ଘୋଷା । ଗଙ୍ଗାଧର ଲାଞ୍ଛନ ସହିତ ଗିରି ଦରି ପରମା ସମ୍ଭୃତର ରୂପଣୀ ଗୋ । ଶ୍ରୀଗୁରୁ ହୃଦନନ୍ଦନ ତୋ ପୁଣ୍ୟ ଆଦସ୍ଥାନ ପାଇଁ ଏ ପ୍ରଭମୟତା ଧରଣୀ ଗୋ । ୧ । ବସ ମା ପଦ୍ମାସନେ ହସ ହସ ବଦନେ ଫିଟିଯାଉ ଜ୍ଞାନର ଚାନ୍ଦ୍ରଣୀ ଗୋ । ବିଧାପିଯାଉ ସରସ ଶୁଦ୍ଧି ହୃଦ ସାରସ ମଧ୍ୟରୁ ନାଶ ହେବ ରଜନୀ ଗୋ । ୨ । ଧରୁ ସ୍ୱପଞ୍ଚ କଣ୍ଠେ ନବ ନବ ରଙ୍ଗରେ ଉତ୍କଳର ପୁରୁଷ ରମଣୀ ଗୋ । ଗାଉ ତୋ ମହାତ୍ମ୍ୟ ମୋହୁ ଦେବ ଭୂଦେବ ନାରୁ ତା ଶୁଣି ବିଶ୍ୱଧ୍ୟାନୀ ଗୋ । ୩ । ଗୃହ ଚିଲିକା କୂଳ ସମୀର ସୁଶୀତଳ ଶୁଭଙ୍କର ତେ ଗାନେ ଜୀବନୀ ଗୋ । ପୁଣ୍ୟଜଳଙ୍ଗ ଯାପ ହେଉ ସାର୍ଥକ ନାମ ତୋ ଦୟାରୁ ପତିତପାବନୀ ଗୋ । ୪ । ସର୍ବଦା ସପ୍ତସ୍ୱରେ ବଜାଇଣ ବୀଣାରେ ଶୁଣାଇ ଦେବ ମଧୁ ରାଗିଣୀ ଗୋ । ଘୋର ବିପଦକାଳେ ରଖିବ ଦୟାବଳେ ଚିନ୍ତାଇ ଚିନ୍ତାମଣି ଜନନୀ ଗୋ । ୫ ।

———✽———

ରାଗ ମଙ୍ଗଳ—ତାଳ କଣ୍ଡୟାଲି ।

ସର୍ବେ ଜୟ ପୂଜ ଗୀର୍ବାଣ୍ ବାଣୀଙ୍କ ପାଦପଦ୍ମ । ଘୋଷା ।

ନାନା ଉପବନେ    ଫୁଲ୍ଲିତ ସୁମନେ
କୁସୁମ ତୋଳିବା ମନସେ ସଦ୍‌ଜ୍ଞାନେ ।
ସୁସୂତ୍ରେ ଗୁନ୍ଥିବା    ମାଳ ନିର୍ମାଣିବା
ନେଇ ପ୍ରଭାତରେ ଦେଲେ ହେବ ସୁଦୃଶ୍ୟ । ୧ ।

ବାଳକ ବାଳିକା ପଠନେ ଅଧିକା
ସ୍ମରଣେ ଗାଅନ୍ତେ ସଙ୍ଗୀତରେ ଏକା ।,
କୁସୁମ ଗୁଞ୍ଜିଡ଼ା ଭରିଥିବ ଧୀରେ
ଜାତିଜନଗଣ ବିଦ୍ୟା କର ଅଭ୍ୟାସ । ୨ ।
ଭୋଜନେ ଶୟନେ ସାଧନେ ଭଜନେ
ସ୍ମରଣ କରିବା ଅନୁକୂଳ ସ୍ଥାନେ ।
ବସନ୍ତ ଭୂଷଣୀ ପାଇବାକୁ ଚିନ୍ତା
ମନ ବଚନରେ ଗାଇ ହେବା ହରଷ । ୩ ।
ଭାରତ ଜନନୀ କୋଳେ ସନମାନୀ
ମାତ ସରସ୍ୱତୀ ଦେବୀ ବୀଣାପାଣୀ ।
ସ୍ୱହଂସ ବାହିନୀ ପୁସ୍ତକଧାରିଣୀ
ତାଙ୍କ ପାଦପଦ୍ମେ ରସ, ଶରଣ ପଶ । ୪ ।
ଧର୍ମ ଅର୍ଥ କାମ ଅଟେ ସର୍ବଧାମ
ମୋକ୍ଷକୁ ସହଜେ ପାଇ ତାଙ୍କ ନାମ ।
ଗାଇବା ମୁଖରେ ବଜାଇ ଯନ୍ତ୍ରରେ
ମନ୍ତ୍ରାଇବା ଯାହା ବିଧି ବେଦେ ପ୍ରକାଶ । ୫ ।
ସର୍ବେ ସାଧ୍ୱୀନାରୀ ଦେଇ ହୁଳହୁଳି
ମଙ୍ଗଳଗାୟନେ ପୁଷ୍ପାଞ୍ଜଳୀ ଢାଳି ।
ମାତାଙ୍କୁ ଡାକିଲେ ମନଫଳ ଫଳେ
ବର ପାଇବେ ଯେବେଲେ ଜାଣି ଦିବସ । ୬ ।
ଗାଇବା ଭଜନ୍ତ ଭୂଷଣୀଙ୍କ ଗୁଣ
ଛଡ଼ାଇବା ସବୁ ମନରୁ ମଳିନ ।
ଅଜ୍ଞାନ ଘୁଞ୍ଚିବା ସୁଜ୍ଞାନ ଲଭିବା
ଚନ୍ଦ୍ର ଚନ୍ଦ୍ରାନନୀ ମାତ, ପାଦରେ ଦାସ । ୭ ।
ନାମ ସଙ୍କୀର୍ତ୍ତନେ ସଙ୍ଗୀତ ଗାୟନେ

ମଣ୍ଡି ଭକ୍ତଜନେ ଯା ନାମ ସ୍ମରଣେ ।
ସ୍ୱସ୍ୱରେ ଗାଇବା ସ୍ୱପଦ ପାଇବା
ନୃତ୍ୟ କରିବା ଉନ୍ମାଦେ ହୋଇ ଉଲ୍ଲାସ । ୮ ।

——ୀ——

ଢ । କଟକ । ଙ । ବଲରାମପୁର ରାଜପୁରୁଷଙ୍କ ନାମ ।

ପୁ ୧ ରୁଷ ବୀର ବିକ୍ରମାଦିତ୍ୟାବ୍ଦ ର ୬୧୦ ଭୋଜରାଜ ଭୋଗାବ୍ଦ ବ ୧୧ର୍ଷରେ ୪୭୫ ଶକାବ୍ଦ ଖ୍ରୀ ୫୫୩ଷ୍ଟାବ୍ଦ ଉତ୍ତର ପଶ୍ଚିମ ପ୍ରଦେଶୀୟ ଜୟପୁର ରାଜବଂଶଜ ଶ୍ରୀ ବଳଭଦ୍ରସିଂହ ତୀର୍ଥାଟନକୁ ଆସି ଓଡ଼ିଶା ରାଜା ଗଜାଧିକେଶରୀଙ୍କଠାରୁ ରାଜ୍ୟ ପ୍ରଦାନ ପାଇ ବଳଭଦ୍ର ସିଂହ ବଦଳେ ଓଡ଼ିଶା ରାଜାଙ୍କ ଦାତ୍ରୀୟ ସଂଜ୍ଞାଧର ବଳଭଦ୍ର ଧୀର ଶୀରବର ହରିଚନ୍ଦନ ମହାପାତ୍ର ନାନାନାମାନୁସାରେ ବଲରାମପୁରେ ରାଜ୍ୟାଭିଷେକ ସୂତ୍ରେ ଅଧିପତି ହେଲେ ତାଙ୍କ—ପରେ କ୍ରମଶଃ ମାଦଳା ବଂଶାବଳୀମତେ ସେହି ପଦ ମର୍ଯ୍ୟାଦା ରାଜସ୍ୱ ଭୋଗ ହେଉଅଛି ।

ପୁ ୨ ରୁଷ ତଦ୍ବିତପୁତ୍ର ରାଜା ପୁରୁଷୋତ୍ତମ ଧୀର ଶୀରବର ହରିଚନ୍ଦନ ମହାପାତ୍ର ରାଜ୍ୟକଲେ।

| | | | | | |
|---|---|---|---|---|---|
| ପୁ ୩ | ,, | ,, | ଜଗନ୍ନାଥ ଧୀର | ,, | ,, |
| ପୁ ୪ | ,, | ,, | ନୀଳାଦ୍ରି ଧୀର | ,, | ,, |
| ପୁ ୫ | ,, | ,, | ସୁଦର୍ଶନ ଧୀର | ,, | ,, |
| ପୁ ୬ | ,, | ,, | ପଦ୍ମନାଭ ଧୀର | ,, | ,, |
| ପୁ ୭ | ,, | ,, | ଜନାର୍ଦ୍ଦନ ଧୀର | ,, | ,, |
| ପୁ ୮ | ,, | ,, | ନୃସିଂହ ଧୀର | ,, | ,, |
| ପୁ ୯ | ,, | ,, | ଭଗବାନ ଧୀର | ,, | ,, |
| ପୁ ୧୦ | ,, | ,, | ହରେରାମ ଧୀର | ,, | ,, |
| ପୁ ୧୧ | ,, | ,, | ପର୍ଶୁରାମ ଧୀର | ,, | ,, |
| ପୁ ୧୨ | ,, | ,, | ବ୍ରଜସିଂହ ଧୀର | ,, | ,, |
| ପୁ ୧୩ | ,, | ,, | ଦୀନବନ୍ଧୁ ଧୀର | ,, | ,, |

ପୁ ୧୪ „ „ ହରେକୃଷ୍ଣ ଧୀର „ „
ପୁ ୧୫ „ „ ତ୍ରିଲୋଚନ ଧୀର „ „
ପୁ ୧୬ „ „ ତାଳୁକେଶ୍ୱର ଧୀର „ „
ପୁ ୧୭ „ „ କୁଞ୍ଜବିହାରୀ ଧୀର „ „
ପୁ ୧୮ „ „ ବଳରାମ ଧୀର „ „
ପୁ ୧୯ „ „ କୃଷ୍ଣଚନ୍ଦ୍ର ଧୀର „ „
ପୁ ୨୦ „ „ ବାଞ୍ଛାନାଥ ଧୀର „ „
ପୁ ୨୧ „ „ ଚିନ୍ତାମଣି ଧୀର „
ପୁ ୨୨ „ „ ନୃସିଂହ ଧୀର „ „
ପୁ ୨୩ „ „ ପଦ୍ମନାଭ ଧୀର „ „
ପୁ ୨୪ „ „ ହଳଧର ଧୀର „ „
ପୁ ୨୫ କଳ୍ପିତପୁତ୍ର ରଜା ରତ୍ନାକର ଧୀର ଖାରଡର ହରିଚନ୍ଦନ ମହାପାତ୍ର ରାଜତ୍ୱକାଳେ
ପୁ ୨୬ „ „ ଉଦ୍ଧବ ଧୀର „ „ „
ପୁ ୨୭ „ „ ଯୋଗେନ୍ଦ୍ର ଧୀର „ „ „
ପୁ ୨୮ „ „ ବନମାଳୀ ଧୀର „ „ „
ପୁ ୨୯ „ „ ରାମକୃଷ୍ଣ ଧୀର „ „ „
ପୁ ୩୦ „ „ ସତ୍ୟବାଦୀ ଧୀର „ „ „
ପୁ ୩୧ „ „ ଗୋବର୍ଦ୍ଧନ ଧୀର „ „ „
ପୁ ୩୨ „ „ ମୁରଲୀ ଧୀର „ „ „
ପୁ ୩୩ „ „ ରଘୁନାଥ ଧୀର „ „ „
ପୁ ୩୪ „ „ ମଧୁସୂଦନ ଧୀର „ „ „
ପୁ ୩୫ „ „ ବନ୍ଧୁ ଧୀର „ „ „
ପୁ ୩୬ „ „ କୃଷ୍ଣଚନ୍ଦ୍ର ଧୀର „ „ „
ପୁ ୩୭ ପୋଷ୍ୟପୁତ୍ର ରଜା ଭଗବାନ ଧୀର „ „ „

ପୁ୩୮ କନ୍ଦିତପୁର ରାଜା ହରହର ଧୀର " " "
ପୁ୩୯ " " ଘନଶ୍ୟାମ ଧୀର " " "
ପୁ୪୦ " " ରାମଚନ୍ଦ୍ର ଧୀର " " "
ପୁ୪୧ " " ନୀଳାଦ୍ରି ବିହାରୀ ଧୀର " " "
ପୁ୪୨ " " ବ୍ରଜବିହାରୀ ଧୀର " " "

ଏ ରାଜା ସନ ୧୨୯୦ ସାଲ ମାଘମାସ ଦ ୧୭ ନ ଲଗାଏତ ସନ ୧୩୧୫ ସାଲ ଜ୍ୟେଷ୍ଠ ଦ ୨୫ ନ ଶନିବାର ଘଣ୍ଟା ୧୧ ୟ ମଧ୍ୟାହ୍ନ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, ବ ୨୫ । ୪ ରାଜ୍ୟଭୋଗ କଲେ; ଏହାଙ୍କ ରାଜତ୍ୱ ସମୟେ ଓଡ଼ିଶା ବନ୍ଦୋବସ୍ତରେ କଳରାମପୁର ବନ୍ଦୋବସ୍ତ ହେଲା ଓ କଳରାମପୁର ବିଶେଷ ଉନ୍ନତ ହୋଇଅଛି । ଏ ରାଜା ନିସନ୍ତାନହେତୁ ଏହାଙ୍କ କନିଷ୍ଠଭ୍ରାତା ରାଜଗାଦି ପ୍ରାପ୍ତହେଲେ ।

୪୮ ରାଜଭ୍ରାତ ରାଜା

ଦାସରଥି ବୀରବର ହରିଚନ୍ଦନ ମାଢ଼ପାଣି ସନ ୧୩୧୫ ଜ୍ୟେଷ୍ଠ ଦ ୨୭ ନ ଇଂରାଜୀ ସନ ୧୯୦୮ ମସିହା ରବିବାର ଅପରାହ୍ନରେ ରାଜସିଂହାସନାରୂଢ଼ ହେଲେ । ଏହାଙ୍କ ରାଜତ୍ୱ-ବେଳେ ମୂଲକ ଉପଜନ ବନ୍ଦୋବସ୍ତରେ ମାପ ହୋଇଥିଲା । ନଜଗଡ଼ ଶ୍ରୀଜଗନ୍ନାଥ ଏକମୂର୍ତ୍ତିୟ-ସ୍ଥଳେ ତିନିମୂର୍ତ୍ତି ନୂତନକଳେବର ଓ ଶ୍ରୀରାଧା-ଙ୍କିଯ୍ୟୁ ପାଟମହାଦେବୀ ଅଠଗଡ଼ ଜ୍ୟେଷ୍ଠା ରାଜମାତାଙ୍କ ଦେୟଅର୍ଥ ଦ୍ୱାରା ନଜଗଡ଼ରେ ବଡ଼-ଦେଉଳ ହୋଇଥିଲା ଓ ମଫସଲରେ ସ୍ଥାୟୀ-

ଦାନରେ କୂପ ପୁଷ୍କରଣୀ ଜଳକୀର୍ତ୍ତି ହୋଇଅଛୁ । ବିଶେଷ ଦୁର୍ଭିକ୍ଷପଡ଼ିବାରୁ ଅନ୍ନଛତ୍ର ଦେଉ-ଥିଲେ ଯଜ୍ଞ କରିଥିଲେ—ସେହି ଯାଗାଗ୍ନିରେ ପ୍ରାଣ ଯିବାପରେ ଶବଦାହ ହୋଇଥିଲା । ବ ୭୧ ବର୍ଷ ବୟଃକ୍ରମରେ ସନ ୧୯୨୪ ମସିହା ଅକ୍ଟୋବର ତା ୨୨ ରିଖ ସନ ୧୩ ୩୨ ସାଲ କାର୍ତ୍ତିକ ଶୁକ୍ଳପକ୍ଷ ନବମୀ ତିଥିର ପୂର୍ବାହ୍ନ ପ୍ରହରେକ ସମୟେ ସ୍ୱର୍ଗାରୋହଣକଲେ । ଏହାଙ୍କର ବିଶେଷ ବନ୍ଧୁ ଓ ବୈଷ୍ଣବ ଭକ୍ତିଥିଲା ଶ୍ରୀ ଜଗନ୍ନାଥଙ୍କ ଦେଉଳ ସନ ୧୩୨୬ ସାଲ ଆରମ୍ଭ ସନ ୧୩୩୧ ସାଲ ବୈଶାଖ ମାସେ ପ୍ରତିଷ୍ଠାହେଲା । ଏହାଙ୍କର ଦୁଇରାଣୀ ଶ୍ରୀ ସତ୍ୟ-ଭାମା ଜ୍ୟେଷ୍ଠା ଓ ଶ୍ରୀ ଲାବଣ୍ୟବତୀ କନିଷ୍ଠା ଅଟନ୍ତି; ଜ୍ୟେଷ୍ଠା ରାଜମାତାଙ୍କ ରାଜଗାଦି ହାରି

ମୁ ୪୮ ଚନ୍ଦ୍ରଚୂଡ ରାଜା

ଶ୍ରୀ ଲକ୍ଷ୍ମୀନାରାୟଣ ପୂର୍ଣ୍ଣଚନ୍ଦ୍ର ଧୀର ବୀରବର ହରିଚନ୍ଦନ ମହାପାତ୍ର ସନ ୧୩୩୨ ସାଲ କାର୍ତ୍ତିକ ଶୁକ୍ଳ ନବମୀ ତିଥି ଦ ୭ .ନ ବୁଧବାର ରାଜଗାଦି ପ୍ରାପ୍ତହେଲେ ଇଂରାଜି ସନ ୧୯୨୪ ମସିହା ଅକ୍ଟୋବର ତା ୨୨ ରିଖ ପ୍ରମାଣ ଅଟେ । ସନ ୧୯୨୬ ମସିହାରେ ଷ୍ଟେଟ ବନ୍ଦୋବସ୍ତ ସରକାରୀ ମାପ ଆରମ୍ଭ ଓ ଆଟେଷ୍ଟେମେଣ୍ଟ ହେଲା । ପ୍ରଭୁ କୃପାରୁ ଏହି ନାବାଳକ ରାଜକୁମାର ସୁଶିକ୍ଷା ଲଭି ଦୀର୍ଘାୟୁ ପ୍ରାପ୍ତହୋଇ ରାଜ୍ୟଭୋଗ କରିବେ ଏବଂ

କୌଶଳକ ପ୍ରଥାମତେ ସ୍ୱଧର୍ମ ନିପୁଣ ରହି
ପ୍ରଜା ପାଳନ କରବେ । ଇତି ।

——❋——

ପୃ ୪୩ ରୁଷ ସ୍ୱର୍ଗୀୟ ରାଜା ଦାସରଥି ଧୀର ହରଚନ୍ଦନଙ୍କ
ଜୀବନୀ ପଦ୍ୟ ।

ରାଗ କଲହଂସ କେଦାର ।

ଧର୍ମନିପୁଣ ଦାସରଥି ରାଜନ । ଧୀର ବୀରବର ଶ୍ରୀ ହରଚନ୍ଦନ ଯେ । ମହାପାତକ ପଦ ଅମର ଧାମେ । ଧର୍ମମାସ କାର୍ତ୍ତିକେ ରହିଲେ ଧର୍ମେ ଯେ । ୧ । ଶୁକ୍ଳ ଶୌରିବାରରେ ନବମୀ ତିଥି । ଦିବସପ୍ରହରକ ମଧ୍ୟେ ଜାଣନ୍ତୁ ଯେ । ଜୀବନ ଶୂନ୍ୟଶିବ ବୋଲଣ କହି । ଶ୍ରଦ୍ଧାପୂ ହେଲ ବୋଲି ଘୋଷିଲେ ଦେଖି ଯେ । ୨ । କାର୍ତ୍ତିକ ସ୍ନାନଦିନ ଅଟେ ସେ ଦିନ । ତେରଶ ବର୍ଷର ଶାଳ ପ୍ରମାଣ ଯେ । ସ୍ନାନ ନିର୍ମାଲ୍ୟ ସେବା ପୂଜା ବିଧାନେ । ନାନାବିଧ ବିପ୍ର ବର୍ଗେ ଦେଲେ ଦକ୍ଷିଣେ ଯେ । ୩ । ଶ୍ରୀବାଜା ଗୁରୁଦେବ ପ୍ରଯୋଗୀ ଥିଲେ । ଅଚିରେ ଶୁଣି ତାଙ୍କ ପାଶେ ମିଳିଲେ ଯେ । ଗୁରୁଦେବଙ୍କୁ ଦେଖି ପାଦରୁ ଧୂଳି । ନେଇ ପାଇଲେ ସ୍ୱର୍ଗ ମଥାରେ ବୋଲି ଯେ । ୪ । ଗୁରୁଙ୍କ ପାଦ ଧରି ମସ୍ତକେ ନନ୍ଦି । ଦେବାରୁ ହରିବୋଲ ଶବଦ ଶୁଣି ଯେ । ପଦ୍ମାସନରେ ବିକେ ପବନ ଛାଡ଼ି । ଧରି ଲଲାଟପଟେ ଗଲେ ସେ ଛାଡ଼ି ଯେ । ୫ । ମାସ ଦିବସ୍ୟ କରି ପଇଡ଼ ଜଳ । ପାନ ସେ କରୁଥିଲେ ନାହିଁ କୈବଲ୍ୟ ଯେ । ଗୃହକୁ ଛାଡ଼ି ଦେବ ଦେଉଳେ ଥିଲେ । ହରିବଂଶ ପୁରାଣ ଶୁଣିଣ ଭଲେ ଯେ । ୬ । ସ୍ୱପ୍ନଦେଖିଲି କେହି କହଣ ଦେଲେ । ପ୍ରାଣ ବିକଳେ ରୂକ୍ଷ ନରକଥାରେ ଯେ । ବ୍ରତ ଉପବାସରେ ବାତ ବଢ଼ିଲା । ଅନ୍ନଦାତାଙ୍କୁ ଧାନା ଅଟେକ କଲି ଯେ । ୭ । ଜନ୍ମ ସେ ଶୂନ୍ୟ ଶୂଳ ବକ୍ଷସ୍ଥଳରେ । ହେଲା ଅତି ବଳେ ପୁତ୍ରଦେଶରେ । ବୈଦ୍ୟ ବିବେକ ବୁଦ୍ଧି ଚିକିତ୍ସା-କଲା । କାହୁଁହିଁ ନ ରହିଲା ସବୁ ବିଫଳ ଯେ । ୮ । ଅଗରୁ ଜାଣି ଛାଡ଼

ଦେବମନ୍ଦିର । ଯିବ ମୁଁ ଯମାଳୟ ନିଶ୍ଚେ ଏଥର ଯେ । ଦକ୍ଷିଣଦିଗେ
ସ୍ଥିତ ବଙ୍ଗଳା ଘରେ । ଏହିତ ଯମାଳୟ କହି ରହିଲେ ଯେ । ୯ ।
ସ୍ଥିର ନରହି ଏଠି ସେଠି ବସିଲେ । ବିକଳ ଦେଖି ସ୍ୱାଙ୍କ ପିଠି ଘସିଲେ
ଯେ । ଉଣା ନଦେଲେ ଶୂନ୍ୟ ବାତ ବଢ଼ିଲା । ଅଚରେ ବଳଦମ୍ଭ କମେ
ଥିଲା ଯେ । ୧୦ । ମଙ୍ଗଳବାର ରାତ୍ରେ ସକଳେ ଜାଣି । ପାଖେ
ବସାଇ କହିଥିଲେ ଏଡ଼ିକି ଯେ । ଯୁବରାଜ ଲାଗିଲା ଭୂମିମାନଙ୍କୁ ।
ବଦାନ୍ୟ ଦିଅ ଏବେ ସର୍ବେ ଅମ୍ଭଙ୍କ ଯେ । ୧୧ । ସେହି ନରାଣବାଣୀ
ଶୁଣାଇଁ ଦେଲେ । ରେବତୀଶ ପୁତ୍ରକୁ ଭୁକ୍ତମଣିଲେ ଯେ । ସାହସ
କେତେ ତାଙ୍କ ଜାଗ୍ରତ ଥିଲା । ପୁଣ୍ୟବନ୍ତରୁ ଚକ୍ଷୁ ଜଣା ପଡ଼ିଲା ଯେ ।
ଠେଁ ଉଠିଣ ସେଠି ବସି ପଡ଼ିତା । ଅତିକଷ୍ଟେ ଘଟିବା କଥା ବର୍ଣ୍ଣିବା
ଯେ । ଯେ ଦେଖିଥିବ ସେହି ଜାଣିବ ସତ । ଶେଷବେଳ ଏପଇ ଯେ
ସତ୍ୟବନ୍ତ ଯେ । ୧୩ । ରାଣୀଏ ଶୁଣିଲେ ଏ ନରାଣବାଣୀ ।
ହାହାକାରରେ ପଡ଼ି ଲୋଟି ଧରଣୀ ଯେ । ମଥା ପିଟିବା ପୁଣି ଅଧୈର୍ଯ୍ୟ
ବାଧା । ବକ୍ର ବ ପଡ଼ି ମୁଣ୍ଡେ କଟାକ୍ଷ ଦ୍ୱିଧା ଯେ । ୧୪ । ସନ୍ନିପାତ
କଲିଲା ରାତ୍ର ପାହିଲା । ପ୍ରାତଃ ସ୍ନାନାଦି ଶୌଚ ପୂଜା ବଢ଼ିଲା ଯେ ।
ବୁଧବାର ସକାଳବେଳ ହୋଇଲା । ବେଳେ ନବପଣ୍ଡିତଙ୍କ ପୁଣ୍ୟ ଦର୍ଶିଲା
ଯେ । ୧୫ । ଶୁଦ୍ଧ ଶୌଣ୍ଡିକ ପୂଜା ଜଣାଇଲି ଯେବା । କରିବା ନାସ୍ତା-
ପଦକୁ ବ ବର୍ଣ୍ଣିବା ଯେ । ମାଗୁଛି ବଳି ଶୀଘ୍ରେ ଦେବତ ଦିଅ । ଏହା
ଭାଷନ୍ତେ ନେଳୁ ଗଡ଼ିଲା ଲୁହ ଯେ । ୧୬ । ସଦଙ୍ଗାନରେ ନାନା
ଉପକରଣ । ଦାନ ଉଚିତ ଦ୍ରବ୍ୟ କରୁ ପ୍ରଦାନ ଯେ । ପ୍ରାୟଶ୍ଚିତ
ବିଧିମତେ ପୂର୍ଣ୍ଣ କରିଲେ । ଯାହାକୁ ଯାହା ଦେବାର ତାକୁ ଦେଲେ
ଯେ । ୧୭ । ନବଲ ରହୁ ବସ୍ତ୍ର ପଦକୁ ଧ୍ୟାଇଁ । ରାମ ରାମ ସ୍ମରଣେ
ବଚନ କହି ଯେ । ପଦ୍ମାସନର ଯୋଗବଳ ସାଧିଲେ । ଯୋଗ ଯନ୍ତ୍ରତା-
ବଲେ ଶୂନ୍ୟେ ମିଶିଲେ ଯେ । ୧୮ । ସତେତେଣି ରାଜଗୁରୁ ବିରାଜ-
ମାନେ । ପାହି ପଦ୍ମ ଅତି ସ୍ୱପଥଶ୍ରମେ ଯେ । ସର୍ବ ସମସ୍ତେ ଶୁନ୍ୟମାନଙ୍କ

ମିଳିଲେ । ଅନାଥଙ୍କୁ ଅଛନ୍ତି 'କହିଲ ମୁଲେ ନେ ।୧୯। ଗ୍ରନ୍ଥଁ ଗ୍ରନ୍ଥଁ
ମୁଣ୍ଡଙ୍କୁ ବଦନକରି । ନାମ ସ୍ମରଣେ-ଶୋଧବନ ବଗ୍ଭର ପେ । ପ୍ରମାଦ
ନ ଛାଡ଼ିଲେ ସାଧନା ତଳେ । ଉର୍ଦ୍ଧ୍ୱେ ଲମ୍ବଠେଇ ପ୍ରାଣ ଛାଡ଼ିଲେ
ସେ । ୨୦ । ମସ୍ତକଠାରେ ଦୁକୁଦୁକ ଦୁଃଖରେ । ଫିଟିଲା ପ୍ରାଣଗଣ୍ଠି
ନକଟଥାରେ ଯେ । ଚନ୍ଦ୍ରବା ସାଧନାରେ ଯୋଗସାଧିଲେ । ଦେଖିବାରୁ
ଅଛିଲା ସର୍ବେ ଚାହିଁଲେ ଯେ । ୨୧ । ପ୍ରାଣୀର ଭଲ ମନ୍ଦ ଗୁଣ ଅଗଣ୍ୟ ।
ପ୍ରାଣ ପର୍ଯ୍ୟନ୍ତକାଳେ ମିଳେ ପ୍ରମାଣ ଯେ । ଯୋଗଙ୍କ ଧର୍ମକ୍ରିୟା ପୂର୍ଣ୍ଣ
ହୋଇଲା । ଫଳବା ଯାହା କ ଦେଖିଲେ ସକଳ ଯେ ।୨୨। ତାଙ୍କ ଜୀବ
ନିବାକୁ ଯେ ଦେଖିଅଛୁ । ସତ୍ୟବନ୍ତ ଏପରି ଫଳ ଲଭନ୍ତି ଯେ । ସେକଥି
ଏକା ଜାଣିଛି ଥିବ ନାସ୍ତ୍ୟ । କହନ୍ତୁ ଦେବ ତା ସନ୍ଧି ନାହିଁ ସନ୍ଦେହ
ଯେ । ୨୩ । ସତ୍ୟ ଶଉଚ ଦୟା କ୍ଷମା ଏ ସ୍ତୁତି । ଗୁଣରେ ପରିପୂର୍ଣ୍ଣ
ଥିଲେ ଦେପର ଯେ । ନରପତି ପଣ୍ଡିତଙ୍କୁ ସେ ଧନ୍ୟବାଦ । ପାତ୍ର ପଦକ
ଥିଲେ ବାନ୍ଧବପଦ ଯେ । ୨୪ । ନଡପ୍ରଭ ବୈଷ୍ଣବ ବସ୍ତୁ ସେବାରେ ।
ପୁରାଣ ପାଠ ଅଦ ଦାନ ଦେବାରେ ଯେ । ପରମସ୍ନେହୀ ଥିଲେ ସ୍ନେହ
ନକର । ପ୍ରଜାଙ୍କୁ ପାଳୁଥିଲେ ଗର୍ବ ନଥିଲ ଯେ । ୨୫ । କବିଙ୍କ
ରଚନାରେ ବନ୍ଧୁଙ୍କ ନାମ । ସଦା ଅଭ୍ୟାସଥିଲା ଅତି ନିଷ୍କାମ ଯେ ।
ଭକ୍ତିବନ୍ତ ସେ ଥିଲେ ମୁକ୍ତି ଲଭିଲେ । ଅକସ୍ମାତେ ସେ ସ୍ୱର୍ଗଧାମେ ଗଲେ
ଯେ । ୨୬ । ଜଳଙ୍କାରଣ କେତେ ଦେବମୂର୍ତ୍ତି । ସ୍ଥାପି ଅନ୍ନଦାନ
ଦୁର୍ଭିକ୍ଷରେ ଅଛ ଯେ । ପ୍ରଶଂସା ପାଇଥିଲେ ସରକାରରୁ । ସେ ଗୁଣ
ପାଶୋର ନଯାଏ ମନରୁ ଯେ । ୨୭ । ବେଲ ଅବସାନରେ ଶ୍ରୀଦସ୍ତେ-
ବେଦ । ଛଡ଼ିଥର ପର୍ଯ୍ୟାରେ ନଗର ପ୍ରାନ୍ତ ଯେ । ନନ୍ଦପ୍ରଭ ଗମନ
ଦର୍ଶି ଯାଉଛି । ଗୁଣ ସ୍ମରି ଧୈର୍ଯ୍ୟ ଧରି ନୋହୁଛି ଯେ । ୨୮ ।
ଗଡ଼ରେ ରାଜଦାଣ୍ଡ କା ଲାଗି ଅଛି । ମାଟି ପଥରେ ବାନ୍ଧ କା ଲାଗି
ବାଡ ଯେ । ବଗିଚା ଗଛଲଗା କଏ ଦେଖିବ । ଗନ୍ଧଣବେଳେ ଶୋଭା
କଏ ଦର୍ଶିବ ଯେ । ୨୯ । କା ଲାଗି ଲଗାଇବା ଫୁଲଗଛକୁ । ନାଥ

କେ ଅଣାଇବେ ବନ ଫୁଲକୁ ଯେ । ନାନାପ୍ରକାରେ ପୁଷ୍ପ ଗନ୍ଧାଦି
ଧରି । କୋଠୋଳି କେ ପୂଜିବ ମୁରେଶ୍ୱର ଭାଇ ଯେ । ୩୦ । କ୍ଷିତାକେ
ରାଗ ଦେଖି କ୍ଷଣକେ ଶାନ୍ତ । ଭକ୍ତି ଭାବନା କରିବାରେ ସମ୍ପୃକ୍ତ ଯେ ।
ସଦା ଶ୍ରୀକୃଷ୍ଣ ନାମେ ଅଛି ଆନନ୍ଦ । ଥିବା ଯା କାହ୍ନୁ ନ୍ୟାୟେ ତାଙ୍କ
ସମ୍ବାଦ । ୩୧ । ରାଜକାର୍ଯ୍ୟକୁ ସଦା ଭୁଞ୍ଜି ଜ୍ଞାନରେ । ଶାସ୍ତ୍ର ଆଲୋଚନା
ବୈଷ୍ଣବ ସେବାରେ ଯେ । ସମସ୍ତ ମାୟା ମିଥ୍ୟା ହବ ସଂସାରେ । କାହ୍ନୁ
ଦିନ କାଟନ୍ତି ଧର୍ମ ଚର୍ଚ୍ଚାରେ ଯେ । ୩୨ । ଛବିଶ ବରଷ ଆଉ ବୟସ
ଥିଲେ । ଯୁବରାଜତି ପାଉଥାନ୍ତେ ଜର୍ମଲେ ଯେ । ପିତୃଶୂନ୍ୟ କରାଇ
କଷଣ ଦେଇ । ସ୍ୱର୍ଗଧାମେ ରାଜଲେ ଛାଡ଼ି ଏ ମହୀ ଯେ । ୩୩ । ଅଜ୍ଞାନ
ବାଳକଙ୍କୁ ଅଟନ୍ତି ଛାଡ଼ି । କାଳ କବଳ ବଳ ନ ପାରି ଏଡ଼ି ଯେ ।
ବେନରାଣୀଙ୍କି ଶୋକଜଳେ ବୁଡ଼ାଇ । ଦେଇଣ ଗଲେ କଷ୍ଟେ
ମଜ୍ଜାଇ ଯେ । ୩୪ । ଖିନ୍ନ୍ୟର ଶିଶୁ ଏବେ ଭୁଟି ଯାଉଛନ୍ତି । ପ୍ରଭୁଙ୍କଠାରେ
ଏହା ଜଣାଉଁ ଅଛୁ ଯେ । ଅଜ୍ଞାନ ଯୁବରାଜ ପୂର୍ଣ୍ଣଚନ୍ଦ୍ରଙ୍କୁ । ଦୀର୍ଘାୟୁ
ଦାନେ ରକ୍ଷା କରିବେ ତାଙ୍କୁ ଯେ । ୩୫ । ଏ ତନ୍ମମତୀ ମାତା କେତେ
ପୁଣ୍ୟଙ୍କୁ । ଚନ୍ଦ୍ରକରଣ ହରନେଇ ତାହାଙ୍କୁ ଯେ । ଥିବା ସେପରି ମାୟା-
ବଳରେ ଟାଣି । ନେଲେ ଗୁଣଗଣେ ସେ ନରମଣି ଯେ । ୩୬ ।
ଯେମ୍ପ ଏକଷଠୀ ବରଷ ଯେଉଁ । ରାଜତ୍ୱ କାଳ ଶେଷ ଅଛି ସଲ୍ଲଗ
ଯେ । ସଦାକାଳରେ ଶାନ୍ତ ବାଳକମତି । ସରଳ ସ୍ୱଭାବରେ କାଳ
କାଟନ୍ତି ଯେ । ୩୭ । କେତେ ବନ ଭ୍ରମଣ କେତେ ଭଜନ । କେତେ
କୌତୁକ କେତେ ରହସ୍ୟପୂର୍ଣ୍ଣ ଯେ । କେତେ କାବ୍ୟ ନାଟକ କେତେ
ପୁରାଣ । କେତେ ବୈଦ୍ୟ ବୃତ୍ତିକୁ ଥିଲେ ସାଧିଣ ଯେ । ୩୮ । ଷନ୍ତ୍ରିଯୁ
ଧନୁର୍ବିଦ୍ୟା ସାଧନା ଅଙ୍ଗେ । ଅସ୍ତ୍ର ଶସ୍ତ୍ରାଦି ବଂଚନାର ସଙ୍ଗେ ଯେ ।
ଜାଣି ଶିଖାଉଥିଲେ ଯତନ କରି । ସବୁ ସଦାରଙ୍ଗଣ ପ୍ରଭୁଙ୍କ ଶିକ୍ଷା ଯେ ।
କେହି ଜାଣି ନ ଥିଲେ ଆମ୍ଭର ରାଜା । ଅଚିରେ ଗଲିଯିବେ ଉଡ଼ାଇ
ଧ୍ୱଜା ଯେ । ବିଧାତା ବିଧାନକୁ ଭାଇ ପୁଜ୍ଞାନ । ହଜଯାଉଣ ଅଛୁ
ଯୋଟେ ଅଜ୍ଞାନ ଯେ । ୩୯ । ବଡ଼ଯା ଛେରାନାଦ ଶୁଭ ଯାଉଛି ।

ତାହା ଚଳନ୍ତା ବନ୍ଦେ ଦୁର୍ଲ୍ଲଭ ନେତ୍ରଦ୍ୱନ୍ଦ୍ୱ ଯେ । ବନ୍ଧୁଙ୍କ ପାଦପଦ୍ମ ନାମ ମୂଳ ନନ୍ଦୀଗଡ଼ । ଏଥିରେ ନେତ୍ରପଥେ ପଡ଼ିଲା ବାଡ଼ ଯେ । ୪୧। ସପ୍ତପୁରରେ ପିଠା ଭୋଜ କେ ଦେବ । ସର୍ବଦା ତୀର୍ଥାଟନେ ଧର୍ମ ସ୍ଥାପିବ ଯେ । ଅଧିକ ଦିନ ଭୋଜ ବଟପ୍ର ଭୋଜନ । ପ୍ରଦାନ କେ କରିବ ହୋଇଲା ଶୂନ୍ୟ ଯେ । ୪୨ । ଚନ୍ଦ୍ରାଧୀନରେ ରହି ଅନେକକାଳ । ଏବେ ଭାବ ଭୂମ୍ୟଙ୍କୁ କେତେକ କଲ ଯେ । ଅନବରତ ଝରେ ନେତ୍ରଯୁଗଳୁଁ । ପାଶୋର ଯାଉନାହିଁ କାହାମନରୁ ଯେ । ୪୩ । ଏ ରେବତୀପୁର ଅନ୍ଧାର ହେଲା । ସବୁ ଦମ୍ଭାରମ୍ଭ ଭାଙ୍ଗିପଡ଼ିଲା ଯେ । କ୍ଷଣେ କାହାକୁ ଗ୍ରାହ୍ୟ କରନ୍ତା ସୁଖ । ସବୁ ସରିଲା ଏବେ ବଢ଼ିଲା ଦୁଃଖ ଯେ । ୪୪ । ନୁହେଁ ଧାଉ ସଂସାର ଅଟେ ଅସାର । ବିଧାତା ଭଣଙ୍କୁ ବଳ କାହାର ଯେ । ସକଳେ ଯିବେ କେହି ରହିବେ ନାହିଁ । ବୃଥା ଭାବନା ମାୟା ଦିଏ ଭୁଲାଇ ଯେ । ୪୫ । ସ୍ୱାମୀହୀନା ଶ୍ରୀମତୀ ରାଣୀମାନଙ୍କୁ । କି ବୁଝାଇ ସାନ୍ତ୍ୱନା କେ ଦେବ ତାଙ୍କୁ ଯେ । ମାୟା ସଂସାର ଭାବ ହୃଦରେ ବିଚାରି । ଦୁଃଖକୁ ସହି କଷ୍ଟେ ରହିବେ ମନ୍ତ୍ରି ଯେ । ୪୬ । ଅନିତ୍ୟ ଅଟେ ସବୁ ନୁହଇ ସ୍ଥିର । ମିଥ୍ୟା ସଂସାରେ କେହି ନୁହେଁ କାହାର ଯେ । ରାଜ୍ୟ ସମ୍ପଦ କଛୁ ସଙ୍ଗେ ନନେଇ । ଛାଡ଼ିଯିବେ ସକଳେ ତ୍ୟଜି ଏ ମହୀ ଯେ । ୪୭ । ପ୍ରଭୁ କୃପା କରନ୍ତୁ ନବରାଜାଙ୍କୁ । ରାଜମାତା ସହ ଶାନ୍ତି ଦିଅନ୍ତୁ ତାଙ୍କୁ ଯେ । ସ୍ୱର୍ଗୀୟ ରାଜା ମୁକ୍ତି ଅମରଧାମେ ଲଭନ୍ତୁ । ଚନ୍ଦ୍ରମଣି ଭାବେ ଏ ମନେ ଯେ । ୪୮ । ଷୋଡ଼ଶବର୍ଷ ରାଜ୍ୟ ପାଳନ-କରି । ଶୂନ୍ୟ ମିଶିଲେ ଶୂନ୍ୟ ହେଲୁ ଅତି ଜୟ । ଦାଶରଥିଙ୍କ ନାମ ମାଳ ଗଳାରେ । ଲମ୍ବାଇ ଥିବ ଶେଷ ଅନ୍ତରକାଳରେ ଯେ । ୪୯ । ଇତି ସ୍ୱର୍ଗୀୟ ରାଜା ଦାଶରଥି ଧୀର ଶେଖର ହରିଚନ୍ଦନ ମହାପାତ୍ର । ଙ୍କ । ବଳରାମପୁରଙ୍କ ପରଲୋକଗତ ସ୍ମରଣମାଳା

—ଃ(୦)ଃ—

॥ ସମାପ୍ତ ॥

